# ସୀତାହରଣ ଚଉତିଶା ।



ଶ୍ରୀ କାର୍ତ୍ତିକ ଚନ୍ଦ୍ର ପାଣ୍ଡେଙ୍କ ଦ୍ୱାରା

ଦ୍ୱିତୀୟବାର ପ୍ରକାଶିତ ।



Printed by H M Dutta.
at the Dutta Press.
CUTTACK.
1925.

ମୂଲ୍ୟ ଟ ୦ ।୯ ତିନିପଇସା ମାତ୍ର ।

# ସୀତାହରଣ ଚଉତିଶା ।

କୁଟୀରୁ ବାହାର ପଦୁଁ ଗଲେକ ଲକ୍ଷ୍ମଣ । କପଟ ଯତି ହୋଇଣ ଲଙ୍କାର ରାବଣ । କହେ ଯତି ଗୋ । କହୁଅଛୁ ଭିକ୍ଷା ଦିଅ ସତୀ ଗୋ ।୧। ଖଳବାଣୀ ନ ଜାଣିଣ ଭିକ୍ଷା ଦେଲେ ଆଣି । ଖଟଲ ଟଟଲ ହରି ରଥେ ବସାଇଲା ପୁଣି । ଖଟର ରଥ ହେ । ଖରତରେ ଚାହେ ଶୂନ୍ୟପଥ ହେ ।୨। ଗୁଣି ଘୋଷି କାନ୍ଦେ ସୀତା ବସି ରଥପରେ । ଗୁପ୍ତବେଶରେ ରାବଣ ଆସିଲା ସତ୍ବରେ । ଗଲେ ବନେ ହେ । ଗୋଡ଼ାଇ ମୃଗକୁ ସ୍ୱାମୀ କେଉଣେ ହେ ।୩। ଘରୁ ଯେତେବେଳେ କାନ୍ତ ହୋଇଲେ ବାହାର । ଘଡ଼ ଘଡ଼ ଗୃହୁଁ ପୋଚେ ବୋଲନ୍ତି ଉତ୍ତର । ଘରେ ଥିବ ଗୋ । ଘୋର ବଚନେ କଷ୍ଟ ନ ସହିବ ଗୋ । ଅଇଲି ଗୋଡ଼ାଇ କାନ୍ତ ଆଖୁ ଯେ ନ ଥିଲେ । ଅସିବ ରୁ ସଙ୍ଗେ ବଳେ ଯେତେ ମନାକଲି । ନ ମାନିଲି ହେ । ଅରଣ୍ୟବନ ନାଳ-ଖାର ହେଲି ହେ ।୪। ଚୂପଥର ରଘୁନାଥ ମୃଗ ମାରଯାନ୍ତେ । ଚଣ୍ଡାଳ ରାବଣ ଧରି ନେଉଅଛି ମୋତେ । ଚାହିଁଥିବ ହେ । ଚମ୍ପ-ଠାସି ଦେଖିଲେ କହିବ ହେ ।୫। ଛନ୍ଦ ଯେ କପଟ କାହୁଁ ନ ଜାଣିଲି ମୁହିଁ । ଛଳମୃଗ ମାରିବାକୁ ଦେଲି ମୁଁ ପଠାଇ । ଛଡ଼ ଗଲେ ହେ । ଛଟକରେ ରାବଣ ଅଇଲେ ହେ ।୬। ଜଗତଭରତା ପ୍ରଭୁ ମାୟାରେ ଭୁଲିଣ । ଯାଉଣ ନ ଥିଲେ ଗଲେ ମୋହର ଯୋଗେଣ ଜୀବମାନେ ହେ । ଜୀବ ନ ରହିବ ମୁହିଁ ଯତେଣେ ହେ ॥ ଝୁରି ଝୁରି ଦିନ ମୋର ନ ସରିବ ଏବେ । ଝାଡ଼ବନେ ମୋହ ବିନା ଆକୁଳ ହୋଇବେ । ଝର ଝର ହେ । ଝରି ନେତ୍ର ବହୁଥିବ ନୀର ହେ ॥ ନିଶିଦିବା ଖୋଜି ମୋତେ ନ ଦେଖିଣ ରାମ । ନୀରବନା ଘୋର-ବନେ ହରାଇବେ ପ୍ରାଣ । ନିଶାକାଳେ ହେ । ନାସିବନା ପ୍ରାଣ

ଯିବ ହେଲେ ହେ । ୧୦ । ଠିକଏ ବାରତା ଯେବେ ପାଅନ୍ତେ ଶ୍ରୀରାମ । ଟେକଲା ରାକ୍ଷସ ପ୍ରାଣ ନାଶନ୍ତେ ବଦନ । ଚାହ୍ନି ନୁହେ ହେ । ଠିକଏ କହିବ ଦେବରାୟେ ହେ । ୧୧ । ଠକ ଋଷିବେଶ ଧରି ମୋ ପାଖେ ମିଳିଲା । ଠକାର କରି ନବୀନ ଗୀତରେ କହିଲା । ଠକାଇଥିଲା ହେ । ଠକି ମୋତେ ନେଉଛନ୍ତି ରାବଣ ହେ । ୧୨ ।

— ——*——

## ରାମଚନ୍ଦ୍ରଙ୍କ ଶୋକ ।

ଡାକୁଛନ୍ତି ରାମ ଲୁଚିଗଲୁ କେଉଁଣେ ସୀତେ । ଡ଼ର କିବା ବନସ୍ତକୁ ନ ମାଡ଼ଇ ତୋତେ । ଡାକେ ମୁହିଁ ଗୋ । ଡରେ ଲୁଚି ଯାଇଅଛୁ କାହିଁ ଗୋ । ୧୩ । ଢାଳି ଗୁହିଁ ଥାଉ ସୀତେ ତେରଛ ନୁହାଁଣି । ଢାଳେ ନିବାରି କରୁଛୁ ଜନକନନ୍ଦନୀ । ଢାଏ କରି ଗୋ । ଢାଏସୁ ମଥା ପିଟିବି ମୋହନ୍ତି ଗୋ । ୧୪ । ଅଣଦେଖା କଉଣି ଲକ୍ଷ୍ମଣ ଛାଡ଼ିଗଲେ । ଏଣୀନୟନା ସେ ଦୋଷୁଁ ମୁଖ ଲୁଚାଇଲେ । ଅନାୟାସେ ଗୋ । ଅନୁବ୍ରତେ ଚଉ ତୋହ-ପାଶେ ଗୋ ।୧୫। ତରକ ନ ଜାଣି ମୁହିଁ ମୃଗ ମାରଗଲି । ତାହ ଶବଦ ଶୁଣିଣ ଚଉଡରେ ପାଞ୍ଚିଲି । ତହିଁ ଥାଇ ଗୋ । ତକ୍ଷଣେ ଲକ୍ଷ୍ମଣ ଦେଖିଲଇଁ ଗୋ । ୧୬ । ଥକା ହୋଇ କରି ଗୁହିଁଦେଲି ଲକ୍ଷ୍ମଣକୁ । ଥୟନୁହେଁ ଚଉ ମୋର ତୋତେ ଦେଖିବାକୁ । ଥର-ହର ଗୋ । ସ୍ଥିରବୁଦ୍ଧି ହୋଇଲା ଅସ୍ଥିର ଗୋ ॥ ଦୁଃଖୀର ରତନ ଧନ ଛଡ଼ାଇଲୁ କେଉଁଣେ । ଦରିଦ୍ର ଅମୂଲ୍ୟ ଧନ ହରାଉଛି ବନେ । ଦୟା ନାହିଁ ଗୋ । ଦୁଃଖ ଦେଉଅଛୁ ବଟନ ରହି ଗୋ । ୧୮ । ଧର୍ମ କର୍ମ ସବୁ ମୋର ବିଫଳ ହୋଇଲା । ଧନୀ ଯଉବନୀ ମୋର କେଉଁ ଅଡ଼େ ଗଲା । ଧୈର୍ଯ୍ୟଧର ଗୋ । ଧରି ପ୍ରାଣ ରହିବ କିପରି ଗୋ । ୯ । ନିରାଶ ନ କର ଏବେ ଅଟଗ ଚନ୍ଦ୍ରମୁଖି । ନୟନୁ ଝରୁଛି ନୀର ଚନ୍ଦ୍ର ସୂର୍ଯ୍ୟ ସାକ୍ଷୀ । ନ ରଖିବ ଗୋ । ନିଷ୍ଠେ

ତୋହବିନା ପ୍ରାଣ ଦେବି ଗୋ । ୨୦ । ଯାଉଛି ବଙ୍କରଡି
କେଉଁଣେ ତୁ ରହିଲୁ । ପରକାର ଦେଇ ମୋତେ କେଉଁଣି ଛନ୍ଦି
ଗଲୁ । ପରକଲୁ ଗୋ । ମରମାଦେ ପକାଇଣ ଦେଲୁ ଗୋ । ୨୧ ।
ଫାଟିଲା ନିଷ୍ଠେ କପାଳ ବନେ ଆସି ମୋର । ଯାନ୍ଦ ଯାଉ ଏତେ
ଦୁଃଖ ଦେଲୁ ଶ୍ରାମାବର । ଫଳ ନାହିଁ ଗୋ । ଫେରି ମୁହଁକୁ ନ
ଗଲି ମୁହିଁ ଗୋ ॥ ବଡ଼ଘର ଝିଅ ବଡଘର ବୋହୂ ତୁହି । ବନେ
ନିର୍ଦ୍ଦୟା କରୁଛ ଏବେ ପ୍ରାଣସହି । ବୁଡ଼ାଇଲୁ ଗୋ । ବହୁତ
ଜଳକୁ ଫେଲିଦେଲୁ ଗୋ ॥ ଭଣଇ ନବୀନ କାହୁଁ ବୁଦ୍ଧି ଦିଶୁ-
ନାହିଁ । ଭକ୍ତି କରି କେହୁ ଅଟା ନେଲା ବଇଦେହୀ । ହଳିଗଲି
ଗୋ । ଭେଳା ମୋର ବୁଡ଼ାଇଣ ଦେଲୁ ଗୋ । ୨୪ ।

———*——

## ରାମଚନ୍ଦ୍ରଙ୍କ ପ୍ରତି ଲକ୍ଷ୍ମଣଙ୍କ ପ୍ରବୋଧ ।

ମାୟାମୃଗର ଡାକକୁ ଜାନକୀ ଶୁଣିଣ । ମୋର ସ୍ବାମୀଙ୍କୁ ବିପଦ
ପଡ଼ିଲା ଲକ୍ଷ୍ମଣ । ମାର ମାର ହେ । ମୃଗ ଡାକ ଶୁଣିଲି କର୍ଣ୍ଣରେ
ହେ । ୨୫ । ଯହୁଁ ବ୍ରାହ୍ମଣନ୍ଦ ସୀତା କର୍ଣ୍ଣରେ ଶୁଣିଲେ । ଯାଅ
ହେ ଲକ୍ଷ୍ମଣ ବେଗେ ବୋଲିଣ ବୋଇଲେ । ଜଗିଥିଲି ହେ ।
ଜାନକୀଠେ କୁବାକ୍ୟ ଶୁଣିଲି ହେ ॥ ରହିଥିଲି ସୀତାଙ୍କୁ ଜଗି
କରି ମୁହିଁ । କୋପ କରି ଯହୁଁ ମୋତେ ଦେଲେକ ପଠାଇ । ରକ୍ଷା
ଅର୍ଥେ ହେ । ରଖିବାକୁ ଗଲି ରଘୁନାଥେ ହେ । ୨୬ । ଲକ୍ଷ୍ମଣ
ଏ ବାଣୀ ଶୁଣି ହୋଇଲେ ବାହାର । ଲଜ୍ଜାଭର ହୋଇଣ କାଟିଲେ
ଛନ୍ଦଗାର । ଲଜ୍ଜାପାଇ ହେ । ଲକ୍ଷେ କଥା ବୁଝାଇଣି କହୁ ହେ ॥
ବୁଝାଇଣ ଶ୍ରୀରାମଙ୍କୁ ବୋଲନ୍ତି ଲକ୍ଷ୍ମଣ । ବଇଦେହୀଙ୍କି ମୁଁ ଖୋଜି
ଆଣିଦେବି ପୁଣ । ବୀରବର ହେ । ବରାଙ୍ଗିନୀ ସୀତାପ୍ରୀ ତୁମ୍ଭର
ହେ ॥ ଶିରରେ ତୁମ୍ଭର ଆଜ୍ଞା ଘେନିଯିବି ମୁହିଁ । ସହଜରେ ସ୍ବର୍ଗରୁ ହିଁ
ଆଣି ମୁଁ ପାରଇ । ଶରାସନ ହେ । ଶୁଭେ ଥିଲେ ତୁମାହାରି କଟରଣି

ହେ ।୩୦। ସ୍ୱରଣ ମଧ୍ୟରେ ଲୁଚିଥିଲେ ବଇଦେହୀ । ସମୁଦ୍ର କୂଳର
ନାଶି ଦେବି ମୁଁ ଅଶାଇଁ । ସୁଗ୍ରୀବେନ୍ଦ୍ର ହେ । ସୀତା ସନ୍ଧାନ ପାଇଲେ
ମିଳିବ ହେ । ୩୧ । ସାନୁଜ ଲକ୍ଷ୍ମଣ ମଢ଼ି ଅଶ୍ରୁ ଗୁଳିଗଲେ ।
ସତ୍ୟବ୍ରତି ଶ୍ରୀରାମ ତେଜ ସେଠାରେ ବସିଲେ । ସତ୍ୟସନ୍ଧ ହେ । ସୁକୁ-
ମାରୀଙ୍କ ବଚନ ଖୋଜନ୍ତି ହେ ।୩୨। ହସ୍ତେ ମୋର ଧନୁଶର ଥିଲେ
ବଇଦେହୀ । ହରହର ହେଲେ ନାହିଁ ରକ୍ଷି ଏ ପାରଇ । ହସନ୍ତମ
ହେ । ହିଁହାର ଆସି ରାମ ମନ ତୋଷ ହେ ।୩୩। ଛଛଦ୍ମେରେ
ଖୋଜିଣି ଲକ୍ଷ୍ମଣ ନ ପାଇଲେ । ଶୂନ୍ୟମନା ହୋଇଣ ଲକ୍ଷ୍ମଣ ଫେରି
ଗଲେ । ଛମାକର ହେ । ଛଟମ ନିବାଜର ଦୋଷ ହର ହେ ।୩୪।



ରାମ ବିଳାପ ।

କାନ୍ତା ନ ପାଇ ପଞ୍ଚବଟୀରେ ରାମ । କରନ୍ତି ଶୋକ ରାମସୀତା
ହରିଲରେ । ଖଳ ଦାନବ । କ୍ଷିତିସୁତା ନମନ୍ତେ ଯାଉ ମୋ ଜୀବ
ରେ । ୧ । ଗହନ କାନନୁ ଗଲୁ କେଉଁଣେ ସୀତେ । ଗେଲେ ଅବା
ଲୁଚିଛୁ ଝାଡ଼ ପର୍ବତେ ଗୋ । ଧୂମାଇ କର । ଦୋଷହୋଇ କାଏସ
ଶୋଇଛୁ ଗୋଖି ଗୋ । ୨ । ନ ମାନ ମୋ ବଚନ ଅଇଲୁ ବନେ ।
ଲୁଚି ରହିଲୁ ସଖୀ ବନ ଶମ୍ଭୂଳେ ଗୋ । ଚନ୍ଦ୍ରମା ମୁଖ । ଚନ୍ଦ୍ର-
ବଦନ ଦେଖି ଯାଉ ମୋ ଦୁଃଖ ଗୋ । ୩ । ଛଇଳା ବାଳାମଣି
ତୋତେ ମୁଁ ଲୁଚି । ଛାର ଜୀବନ କର୍ପା ନ ଯାଇ ଅଛୁ ଗୋ ।
ଜଗନ୍ମୋହିନୀ । ଜନକ ରାଜାଙ୍କର ଅଟୁ ଦୁଲ୍ଲଭୀ ଗୋ ।୪। ଝୁରି
ଝୁରି ତୋ ବିନା ଯାଉଛି ପ୍ରାଣ । ଝଟନ୍ତୁ ଜଳଦେଇ ରଖ ଜୀବନ
ଗୋ । ନବଘନ ନୁହ । ନୟନକୋଣେ ବାରେ ଦେଖା ତୁ ଦିଅ ଗୋ ।
ଟେକିଛି ଅଟା ପକ୍ଷୀ ତୋହ ଉପରେ । ଠାହି କରୁଛୁ କପଁ ଲୁଚି
ବନରେ ଗୋ । ଠଣ ସୁନ୍ଦର । ଠାକୁରଙ୍କର ଅଟୁ ତୁ ମନୋହାରୀ
ଗୋ ।୫। ଡର କି ବନସ୍ତରୁ ନ ମାଡ଼ ସଖି । ଢାଳେ କେଉଁ

ରାକ୍ଷସ ଦେହ୍ଲ କା ଭକ୍ଷି ଗୋ । ଭ୍ରମ କରଣ । ଡାକିଲ କହେ ରାକ୍ଷସ
ବାନ୍ଧିବ ପ୍ରଣ ଗୋ । ୭ । ଅଯୋଧ୍ୟାରେ ସଖି କେତେଣ ରହିଲେ ।
ଅନୁଗ୍ରହ କରଣ ବାର୍ତ୍ତା କେ ଦେଲେ ଗୋ । ତୋର କୃପାରୁ ।
ତାର ଦଅନ୍ତି ତାକୁ ସ୍ୱର୍ଣ୍ଣେ ମଧ୍ୟରୁ ଗୋ ।୮। ଥିବୁ କା ନ ଥିବୁ ଗୋ
ଜୀବନେ ତୁହି । ଅନେକ ଦିନୋ ଚନ୍ଦ୍ରମୁଖୀ ଦେଖିଲି ନାହିଁ ଗୋ ।
ଦାରୁଣ ଦୈତ୍ୟ । ଦମ୍ଭରେ ଲଙ୍କାରେ ରଖିବେ ତୋତେ ଗୋ ॥
ଧନୁଶର ଯେବେ ମୋ ହାତରେ ଥିବ । ଧରି ଲଙ୍କାରୁ ତୋତେ ନେଇ
ରଖିବି ଗୋ । ନାହିଁ ତା ଭୟ । ନାଶିବ ତାର ପ୍ରାଣ କଲି ନିଶ୍ଚୟ
ଗୋ । ୯ । ପୂରୁଥିଲେ ଜନକ ରାଜା ମିଥିଳାରେ । ପୂର୍ବ ଧନୁକୁ
କେହି ନ ଧରି କରେ ଗୋ । ଫୁଲର ହାର । ଫୁଲପଣେ ମିଥିଳାକୁ
ଥିଲେ ଯାଇ ଗୋ ।୧୦। ବଡ଼ ବଡ଼ ଋଷିମାନେ ଗଲେ ହାରି ।
ବଡ଼ାର ପଣ ଦେଖିଅଛ ମୋହର ହେ । ଭୟ ନ କର । ଭ୍ରମଣି
ଯୋଡ଼ା କେତେଣ ସୀତା ରଖିଲ ହେ । ୧୧ । ନାହିଁ କହିଣ କେହି
ଲଙ୍କାରୁଥିଲେ । ମାତ୍ରସ୍ଥ ମହିଁ ସଙ୍ଗ ଦଅ ଯେ ଭଲେ ହେ । ଯଦି
ଜୀବନେ । ଜୀଇବାର ଆଶା କରିଅଛୁ ମନେ ହେ । ୧୨ । ରଖିବ
ନାହିଁ ଦେହ ପ୍ରାଣ ହାରିବ । ରହି ଜୀବନେ କିସ ସୁଖ ପାଇବ
ହେ । ଲକ୍ଷ୍ମଣବୀର । ଲୟ ଲାଗି ଅଛୁ ସଙ୍ଗ ଜାଗରେ ହେ ॥
ବାବୁ ସାନୁଜ ଯାଅ ଗୃହକୁ ଫେରି । ରାମ ହେଲେ ବଧାଇ ବନେ
ଅନ୍ତର ହେ । ସୁମିତ୍ରାସୁତ । ହେବଣ ଥିବୁ ମାତା ଆଦ ଭରତ
ହେ । ୧୩ । ଯଜ୍ଞମିତ୍ରୀ ଶୁଣିଣ ବୋଲନ୍ତି ବାଣୀ । ସକଳ ଜୀବେ
ପୃଚ୍ଛା କରିବା ପୁଣି ହେ । ସର୍ବେ ରହିଲେ । ସମ୍ମତ ଭ୍ରାତ
ପକ୍ଷୀବର ଭେଟିଲେ ହେ । ୧୪ । ହରଷ ହେଲା ପଛି ରାମକୁ ଯାଇ ।
ହନୁମେ ଲଙ୍କପତି ନେଲା ଗୁହାଇ ହେ । ଷଟମେ ନବୀନ । ଷଣେ
ପାଦପଦ୍ମରେ ମାଗେ ଶରଣ ହେ । ୧୫ ।

---

## ପକ୍ଷୀଚଣ୍ଠାଠାରୁ ସୀତାଙ୍କ ସମ୍ବାଦ ।

କହୁଛନ୍ତି ପକ୍ଷୀବର ଶୁଣ ହେ ଶ୍ରୀରାମ । କାରୁଣ୍ୟ କରନ୍ତି ସୀତା ରଥରେ ବସିଣ । ଖଳଦୈତ୍ୟ ହେ । ଖରତରେ ବାହୁଥିଲା ରଥ ହେ । ୨ । ଗୋଳକରି କହିଲି ମୁଁ ନ ଛାଡ଼ିଲି ସତୀ । ଗର୍ବକରି ଚୋରାଇ ଅଣିଛୁ କା ଯୁବତୀ । ଧଡ଼କରେ ତୁହେ । ଧଇଡ଼ ଲାଗିବ ଘୋର ପ୍ରହର ହେ ।୨। ଅରଣ୍ୟରେ ତାକୁ ମୁହିଁ ଓଗାଳନ୍ତେ ପଥ । ଆକାଶ ମାର୍ଗକୁ ପୁଣି ବାହି ନେଲା ରଥ । ମୁହିଁ ଦେଖି ହେ । ଚତୁର୍ଦ୍ଦିଗ ପଥ ମୁଁ ରୁନ୍ଧିଲି ହେ ॥ ଛାଡ଼ି ରଥ ମୋର ସଙ୍ଗେ ଯୁଦ୍ଧ କଲା ସେହି । ଛିନ୍ନଭିନ୍ନ କଲି ତାର ରଥ ଅଶ୍ୱ ମୁହିଁ । ଜାଣି ସତ୍ୟ ହେ । ଯାଇଣି ଲୁଚିଲେ ମେ ର କଥ ହେ ।୪। ଝଟତି ବୋଇଲେ ମୁହିଁ ଶ୍ରୀରାମଙ୍କ ନାରୀ । ଛାଡ଼ିବନୁ ମୋତେ ଅଣିଅଛୁ ଚୋରିକରି । ନ ମାନିଣ ହେ ନାମଧାର ନବାଢ଼ିଲା ରାବଣ ହେ । ୫ । ଠିକାଏ ଭିତରେ ମୋର ଡେଣା କାଟିଦେଲା । ହେକେନେଇ ସୀତାଙ୍କୁ ରଥରେ ବସାଇ । ଚେଲି ଦେଲା ହେ । ଚିକେ ଶୂନ୍ୟମାର୍ଗେ ରଥ ବାହି ହେ । ୬ । ଏତେକେ କହି ପକ୍ଷିବର ଜୀବନ ହାରିଲା । ଶ୍ରୀରାମଙ୍କୁ ବାର୍ତ୍ତା ଦେଇ ସ୍ୱର୍ଗେ ଚଳିଗଲା । ଦେଖି ରାମ ହେ । ଲକ୍ଷ୍ମଣଙ୍କୁ କହନ୍ତି ବଚନ ହେ । ୭ । ବନସ୍ଥଳୁ କାଷ୍ଠ ଆଣି ଶବକୁ ଦହିବା । ପିତୃତୁଲ୍ୟ ପକ୍ଷୀ କ୍ରିୟାକାର୍ଯ୍ୟକୁ କରିବା । ଶେଷ କର ହେ । କହୁଅଛି ନବୀନ ବନ୍ଧୁ ହେ । ୮ ।

——ଃ୦ଃ——

ସମାପ୍ତ ।

କଟକ ଦ୍ୟୁତପ୍ରେସରେ ଶ୍ରୀ ହରମୋହନ ଦତ୍ତଙ୍କ ଦ୍ୱାରା ମୁଦ୍ରିତ ।